# ବନ୍ଧ୍ୟା—ଚିକିତ୍ସା ।

( ପ୍ରସୂତରୋଗ ଓ ବାଲରୋଗ ଚିକିତ୍ସା ସହିତ )

ଶ୍ରଦ୍ଧାସ୍ପଦ
କବିରାଜ ଶ୍ରୀଯୁକ୍ତ ହରିହର ମହାପାତ୍ର ଶର୍ମା
ଓ
କବିରାଜ ଶ୍ରୀଯୁକ୍ତ ଉପେନ୍ଦ୍ର ଦେବତାଙ୍କ
ଦ୍ୱାରା ଅନୁମୋଦିତ ।

ଶ୍ରୀଦୀନବନ୍ଧୁ ଗଡନାୟକଙ୍କ ଦ୍ୱାରା
ପ୍ରକାଶିତ ।

ବାମଣ୍ଡା

ହିତୈଷିଣୀ ଇଲେକ୍ଟ୍ରିକ ମେସିନ ପ୍ରେସରେ
ମୁଦ୍ରିତ ।

ମୂଲ୍ୟ ୫° ୵ ମାତ୍ର

# ଭୂମିକା ।

ମୁଁ କେତେକ ବର୍ଷ ହେଲା ଦେଖି ଆସୁଅଛି, ସନ୍ତାନହୀନ ନର-ନାରୀମାନେ ଶାରୀରିକ ପୀଡ଼ାର ଚିକିତ୍ସା ପରି ବନ୍ଧ୍ୟା କିମ୍ବା ମୃତବତ୍ସାର ଚିକିତ୍ସା ନିମନ୍ତେ ମନୋନିବେଶ ନକରି କେବଳ କପାଳ ଉପରେ ନିର୍ଭର କରତଃ ନିଜ ନିଜକୁ ଅଜ୍ଞାନ ମରୁଭୂମିରେ ପରିଣତ କରନ୍ତି । ଯେଉଁମାନେ ଆଶାନ୍ୱିତ ହୋଇ ଯଜ୍ଞାଦି କରି ବହୁ ଅର୍ଥବ୍ୟୟ କରନ୍ତି, ପରିଶେଷରେ ବିଫଳ ମନୋରଥ ହୋଇ ଦ୍ୱିଗୁଣ କଷ୍ଟାନୁଭବ କରନ୍ତି । ସେମାନଙ୍କର ବୁଝିବା ଉଚିତ, ଏହା ପ୍ରାକୃତିକ ନିୟମର ଅଧୀନ ।

ପ୍ରତ୍ୟକ୍ଷ ବିଜ୍ଞାନାନୁମୋଦିତ ପଥ ସତ୍ୟ ଓ ଫଳପ୍ରଦ । ପ୍ରାଚୀନ ଆର୍ଯ୍ୟଋଷିଗଣ ଶରୀର-ତତ୍ତ୍ୱ ଅବଗତ ଥିଲେ, ସେମାନେ ଏ ସମ୍ବନ୍ଧେ ଚିକିତ୍ସା ପ୍ରଣାଳୀ ପ୍ରଦର୍ଶନ କରି ଯାଇ ଅଛନ୍ତି । ମହାତ୍ମା ନାଗଭଟ୍ଟ ସେମାନଙ୍କ ମଧ୍ୟରେ ଅନ୍ୟତମ । ଭୂତ-ବର୍ତ୍ତମାନ-ଭବିଷ୍ୟତ୍ ଦ୍ରଷ୍ଟା ଋଷିଗଣ ଭାଗ୍ୟ ଉପରେ ନିର୍ଭର କରୁଥିଲେ କଦାପି ଚିକିତ୍ସା ପୁସ୍ତକ ପ୍ରଣୟନ କରିବାକୁ ପ୍ରୟାସୀ ହୋଇ ନଥାନ୍ତେ ।

ଆଧୁନିକ ଶରୀର ତତ୍ତ୍ୱବିଦ୍ ବୈଜ୍ଞାନିକମାନେ କୌଣସି ବିଷୟ ପ୍ରତ୍ୟକ୍ଷ ପ୍ରମାଣିକୃତ ନହେଲେ ତାହା ଗ୍ରହଣ କରନ୍ତି ନାହିଁ । ସେମାନେ କହନ୍ତି:— ପୁରୁଷର ଶୁକ୍ରକୀଟ ସୁସ୍ଥ-ସବଳ ଓ ନାରୀର ଡିମ୍ବସୁ

ଜନ୍ମୋଷଥିଲେ ସନ୍ତାନ ଦୀର୍ଘଜୀବୀ ହୁଏ । ନର ନାରୀର ରକ୍ତଦୋଷ ଓ ଦୁଷ୍ଟ୍ରିୟା ଜନିତ କୁଫଳ ସନ୍ତାନର ଅକାଳ ମୃତ୍ୟୁର ହେତୁ । ସୁତରାଂ କେବଳ ବନ୍ଧ୍ୟା କିମ୍ବା ମୃତବତ୍ସା ନାରୀ ଔଷଧ ସେବନ କଲେ ସମ୍ୟକ୍ ଫଳ ମିଳିବ ଏପରି ନିଶ୍ଚିନ୍ତ ନହୋଇ ପୁରୁଷ ମଧ୍ୟ ଶାସ୍ତ୍ରୋକ୍ତ ରକ୍ତ ପରିଷ୍କାରକ ଓ ବଳ-ବୀର୍ଯ୍ୟ କାରକ ଔଷଧ ସେବନ କରିବା ଏକାନ୍ତ ବାଞ୍ଛନୀୟ । ସୁତରାଂ ସ୍ତ୍ରୀ-ପୁରୁଷ ଉଭୟ ମଧ୍ୟରେ ସନ୍ତାନୋତ୍ପାଦନର ପ୍ରତି-ବନ୍ଧକ କାହାର କେଉଁ ରୋଗ ଅଛି ତହିଁର ମୂଳ କାରଣ ଅନୁସନ୍ଧାନ କରିବାକୁ ହେବ, ଯେହେତୁ କାହାରିବା ଶୁକ୍ରଦୋଷ, କାହାରିବା ଜରାୟୁପୀଡ଼ା କାହାର ବା ଅନ୍ୟାନ୍ୟ କୁତ୍ସିତ ବ୍ୟାଧି ହେତୁ ସନ୍ତାନ ଉତ୍ପତ୍ତି ହୁଏନାହିଁ, ଯଦିହୁଏ ତାହା ଶୀଘ୍ର ନାଶପ୍ରାପ୍ତ ହୁଏ । ଅତଏବ ସ୍ତ୍ରୀ-ପୁରୁଷ ଉଭୟେ କିଛିକାଳ ଚିକିତ୍ସାଧୀନ ହେଲେ ଅବଶ୍ୟ ସେମାନଙ୍କର ଆଶା ଫଳବତୀ ହୋଇପାରେ, ସେମାନେ ପୁତ୍ରଲାଭ କରି ପରମ ସୁଖରେ କାଳକର୍ତ୍ତନ କରିବାକୁ ସମର୍ଥ ହେବେ ।

ବହୁଦିନ ହେଲା, ଏତଦ୍ଦେଶୀୟ ନର-ନାରୀ ମାନଙ୍କର ଉପରୋକ୍ତ ଭ୍ରମ ଦୂର କରିବା ପାଇଁ ମୁଁ ଏପରି ଖଣ୍ଡେ ଚିକିତ୍ସା ପୁସ୍ତକ ପ୍ରକାଶ କରିବାକୁ ମାନସ ରଖିଥିଲି । ଉକ୍ତ ଭ୍ରମ ଦୂରୀକରଣାର୍ଥେ ଉପରେ ସ୍ଥୂଳତଃ ଗୋଟିଏ ଦୁଇଟି ମାତ୍ର କଥାର ସୂଚନା କରି ଦେଇଅଛି । ବିଜ୍ଞ ପାଠକ ମାନେ ସ୍ୱାଧୀନଭାବେ ଆଲୋଚନା କରି ଦେଖିଲେ ଅନେକ ସତ୍ୟ ଘଟଣା

ପ୍ରଭୃଷ୍ୟ କରି ପାରିବେ । ଅଧୁନା ମହାତ୍ମା ନାଗରଙ୍କ କୃତ ଅତି ଉପାଦେୟ ଏହି କ୍ଷୁଦ୍ର ଗ୍ରନ୍ଥ ଗଣ୍ଡିକ ସାଧାରଣର ଉପକାରାର୍ଥେ ପ୍ରକାଶ କଲି ।

ବିଷୟାନୁରୋଧେ ଅଶ୍ଳୀଳ ଭାବବାର ଉଚିତ ନୁହେ — ଚିକିତ୍ସା ପୁସ୍ତକ ସମ୍ବନ୍ଧେ ଅଶ୍ଳୀଳ ଦୋଷ ବର୍ଜ୍ଜିତ ; ତଥାପି ମୁଁ ଏ ପୁସ୍ତକ ଖଣ୍ଡିକ ଅଶ୍ଳୀଳ ଦୋଷରୁ ମୁକ୍ତ କରିବାକୁ ଯତ୍ନରେ ତ୍ରୁଟୀ କରିନାହିଁ

ରାଜକୁମାର ସ୍କୁଲର ଶିକ୍ଷକ ଶ୍ରଦ୍ଧେୟ ପ୍ରାଜ୍ଞ ଦିବ୍ୟରାଜସିଂହ ଏ ପୁସ୍ତକର ପ୍ରୁଫ୍‌ଭାର ଗ୍ରହଣ କରି ଥିବାରୁ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛି ।

| | | |
|---|---|---|
| ଦେବଗଡ଼ | } | ବିନୟାବନତ |
| ତା ୧୬।୯।୧୯୧୪ | | ପ୍ରକାଶକ |

ସିଦ୍ଧ ଯୋଗୀ ନାଗଭଟ୍ଟ କୃତ

# ବନ୍ଧ୍ୟା—ଚିକିତ୍ସା ।

## ଅଥ ମଙ୍ଗଳାଚରଣମ୍ ।

ଯସ୍ୟ ଶୂରସ୍ୟ ବିମଳଂ ଚରଣାରବିନ୍ଦଂ
ସଂସେବ୍ୟତେ ବିବୁଧ ସିଦ୍ଧ ମଧୁବ୍ରତେନ ।
କର୍ମ୍ମାଣି ଶାନ୍ତିକଗୁଣାଷ୍ଟକ ବର୍ଗପୂର୍ତ୍ତିଂ
ତ୍ୱଂ ଶଙ୍କରଂ ସକଳ ଦୁଃଖହରଂ ନମାମି ।

ଅମରନ୍ଦକର ଓ ସିଦ୍ଧଗଣ ମଧୁକର ରୂପେ ଯାହାଙ୍କର ଅମଳ ଚରଣ କମଳ ସେବା କରିଥାନ୍ତି , ଯେ ଅଖିଳ ସୃଷ୍ଟିର ସଂହାର, ଗୁଣ, ଧ୍ୟାନ, ଧାରଣାଦି ଅଷ୍ଟାଙ୍ଗ ଯୋଗ ଏବଂ ଧର୍ମ୍ମାଦି ଚତୁର୍ବ୍ବର୍ଗେ ବିରାଜିତ , ସେହି ଅଖିଳ ଦୁଃଖନାଶନ ଶଙ୍କରଙ୍କୁ ନମସ୍କାର ।

## ନଷ୍ଟପୁଷ୍ପ-ପୁଷ୍ପିତ-କରଣମ୍ ।

ନାରୀଜାତିର ନଷ୍ଟ ପୁଷ୍ପ ରକ୍ତ ଗୁଳ୍ମାଦି ନାନା-ରୋଗର କାରଣ, ଏ ହେତୁରୁ ଯେପରୁ ନଷ୍ଟ ପୁଷ୍ପ ପୁଷ୍ପିତ ହୁଏ, ନାଗଭଟ୍ଟ ତଦନୁରୂପ ଔଷଧ ପ୍ରଚାର କରି ଯାଇ ଅଛନ୍ତି ।

ଜ୍ୟୋତିଷ୍ମତୀ କୋମଳପତ୍ରମଗ୍ନୌ
ଭୃଷ୍ଟଂ ଜବାଯାଃ କୁସୁମଞ୍ଚ ପିଷ୍ଟମ୍ ।

ବୃହାମୃନ୍ନା ପୀତମିଦଂ ଯୁକ୍ତଚଧ୍ୟାଃ
କରୋତି ପୁଷ୍ପଂ　※　※　※

ପ୍ରଥମତଃ ଅଗ୍ନିଦ୍ୱାରା ଲଭାଫିଟିକିରୀର କୋମଳ ପତ୍ର ଝୁଲ୍‌ସାଇ ନେବ । ଅନନ୍ତର ଛବାପୁଲ୍ ସହିତ ମର୍ଦ୍ଦନ ପୂର୍ବକ ଅନେକ ଦିନର ବାସିଜଳ ଅଥବା କାଞ୍ଜି ସହିତ ମିଶାଇ ସେବନ କଲେ ନଷ୍ଟ ପୁଷ୍ପ ଉପଶମ ହୁଏ ।

ଦୁର୍ବ୍ବାଦଳଂ ତଣ୍ଡୁଳ ତୁଲ୍ୟଭାଗଂ
ନିକ୍ଷିପ୍ୟ ପିଷ୍ଟଂ ପରିପାଚିତଞ୍ଚ ।
ତଦ୍ଭକ୍ଷୟିତ୍ୱା ବନିତା ପ୍ରଣଷ୍ଟଂ
ପୁଷ୍ପଂ ଲଭତେ ସ୍ୱବଲାନୁରୂପମ୍ ।।

ଦୁର୍ବ୍ବାଘାସ ଓ ତଣ୍ଡୁଳ ତୁଲ୍ୟ ପରିମାଣରେ ନେଇ ଏକତ୍ର ମର୍ଦ୍ଦନ ପୂର୍ବକ ପିଷ୍ଟକ ପ୍ରସ୍ତୁତ କରିବ । ପରେ ଏହି ପିଷ୍ଟକ ଅଗ୍ନିରେ ପାକ ସେବନ କଲେ ନଷ୍ଟପୁଷ୍ପ ଅରୋଗ୍ୟ ହୁଏ ।

ପାଶ୍ୱବତ ଦୁଗ୍ଧେଷଞ୍ଚ ମଧୁନା ସଂପିବେତ୍‌ତତଃ ।
ପାତ୍ରମଳ ମଧୁ ସହିତ ମିଶାଇ ସେବନ କରିବ ।
କ୍ୱାଥଂ ଗୁଡ଼ ତ୍ରିଷଣକଂ ତିଳଭାର୍ଗୀ କୃତଂ ପିବେତ୍
କ୍ୱାଥଂ ରକ୍ତ ଭବେ ଗୁଳ୍ମେ ନଷ୍ଟପୁଷ୍ପେ ଚ ଯୋଜୟେତ୍ ।

ନିକନ୍ଥୁର କ୍ୱାଥ, ଗୁଡ଼ ଓ ତିଳଚୂର୍ଣ୍ଣ ଏହି ଦ୍ରବ୍ୟ ଏକତ୍ର କରି ସେବନ କଲେ ନଷ୍ଟପୁଷ୍ପ ଅରୋଗ୍ୟ ହୁଏ । ଉକ୍ତ କ୍ୱାଥ ରକ୍ତ ଗୁଳ୍ମରେ ମଧ୍ୟ ଉପକାରୀ ।

## ଅତିରକ୍ତୋ ନିବାରଣମ୍ ।

ଧାତ୍ରୀଞ୍ଚ ପଥ୍ୟାଞ୍ଚ ରସାଞ୍ଜନଞ୍ଚ
କୃତ୍ୱା ବିଚୂର୍ଣ୍ଣଂ ସଜଲଂ ନପୀତମ୍ ।

ଧାତ୍ରୀ, ହରିତକୀ ଓ ରସାଞ୍ଜନ ଏହି ତେତେକ ଦ୍ରବ୍ୟ ଉତ୍କୃଷ୍ଟରୂପେ ଚୂର୍ଣ୍ଣ କରିତଃ ଏକତ୍ର କରି ଜଳ ସହିତ ସେବନ କରିବ ।

ଅପାମାର୍ଗସ୍ୟ ମୂଳନ୍ତୁ ଦୃଢ଼ପୂଗେନ ଭକ୍ଷୟେତ୍ ।

ପକ୍ୱ ଗୁବାକ ସହିତ ଅପାମାର୍ଗ ଚେର ଭୋଜନ କରିବ ।

ଚନ୍ଦନଂ କ୍ଷୀର ସଂଯୁକ୍ତଂ ସଘୃତଂ ପାୟୟେଦ୍ଭିଷକ୍ ।
ଶର୍କରା ମଧୁ ସଂଯୁକ୍ତ ମସୃକ୍‌ସ୍ରାବବିନାଶନମ୍ ॥

ଚନ୍ଦନ, କ୍ଷୀର, ଘୃତ, ଶର୍କରା, ମଧୁ ଏ ସମସ୍ତ ତୁଲ୍ୟ ପରିମାଣରେ ମିଶାଇ ସେବନ କରିବ ।

ଅଶୋକ ବଲ୍କଲ କ୍ୱାଥ ଶୃତଂ ଦୁଗ୍ଧଂ ସୁଶୀତଳମ
ଯଥାବଳଂ ପିବେତ୍ ପ୍ରାତସ୍ତୀବ୍ରାସୃଗ୍ଦରନାଶନମ୍ ।

ଅଶୋକ ଛାଲିକୁ ଦୁଗ୍ଧ ଓ ଜଳରେ ସିଦ୍ଧ କରି ଦୁଗ୍ଧାବଶେଷ ରଖି ଶୀତଳାବସ୍ଥାରେ ପାନକଲେ ପ୍ରବଳ ପ୍ରଦର ରୋଗର ଶାନ୍ତି ହୁଏ ।

---

## ବାଧକ-ଚିକିତ୍ସା ।

କନ୍ୟାସାରଂ କେଶରଂ ଭୋଗିଫେନଂ
ସର୍ବଂ ତୁଲ୍ୟଂ ବଙ୍ଗ ଦେବପ୍ରିୟେତ
କ୍ଷିପ୍ତ୍ୱା ଖଲ୍ଲେ ମର୍ଦୟେତ୍ ଖାବନେନ

ମାଷା ରକ୍ତୀ ଦ୍ୱେ ତ୍ରୟାଣାଂ ଜଲଞ୍ଚ
*　　* ବାଧଘ୍ନୀ ଚୈବନାଶ୍ଚ
ଶୂଳଂ ଚୂର୍ଣ୍ଣଂହନ୍ତି ଗର୍ଭିଣ୍ୟୋତ୍ତମମ୍ ।

ମୁସବ୍ବର, ହିରାକସ, ଅଫିମ୍, ବଙ୍ଗଭସ୍ମ କବାବଚିନି ଏ ସମସ୍ତ ସମଭାଗରେ ଗ୍ରହଣ ଓ ଜଳରେ ମର୍ଦ୍ଦନ କରି ଦୁଇରତି ପ୍ରମାଣ ବଟିକା କରି ଜଳ ଅନୁପାନରେ ଦୈନିକ ଏକ ବା ଦୁଇ ବଟିକା ସେବନ କରିବ ।

ମୁସବ୍ବର, ହିରାକସ, ଅଫିମ ଓ ଦାରୁଚିନି ସମଭାଗରେ ନେଇ ଜଳରେ ମର୍ଦ୍ଦନ କରି ଦୁଇରତି ପ୍ରମାଣ ବଟିକା କରିବ। ଜଳରେ ସେବନ କଲେ ବାଧକ ଶାନ୍ତହୁଏ । ( ଏହି ଦୁଇ ଔଷଧରେ, ଭୃଙ୍ଗରାଜ ରସରେ ହୀରାକସକୁ ସିକ୍ତକରି ଶୁଷ୍କକଲେ ଓ ଅଫିମକୁ ଦୁଗ୍ଧରେ ସିଦ୍ଧ କରି ଶୁଖାଇଲେ ତାହା ଶୋଧିତ ହେବ, ପରେ ଔଷଧରେ ବ୍ୟବହୃତ ହେବ )।

ରକ୍ତରୋଧ ନିବାରଣ ପାଇଁ କାଞ୍ଜି ସହିତ ଜବା ଫୁଲକୁ ବାଟି ସେବନ କରିବ ।

---

## ବନ୍ଧ୍ୟାର ଗର୍ଭଧାରଣ ପ୍ରକରଣ ।

ଜନ୍ମବନ୍ଧ୍ୟା କାକବନ୍ଧ୍ୟା ମୃତବତ୍ସା କ୍ରମାତସ୍ତ୍ରିୟଃ ।
ତାସାଂ ପୁତ୍ରୋଦୟାର୍ଥଞ୍ଚ ଶମ୍ଭୁନା ସୂଚିତଂ ପୁରା ॥

ବନ୍ଧ୍ୟା ଅନେକ ପ୍ରକାର — କେହି ଜନ୍ମବନ୍ଧ୍ୟା, କେହି କାକବନ୍ଧ୍ୟା ଏବ କେହି ବା ମୃତବତ୍ସା ହୋଇଥାନ୍ତି । ଯେଉଁପରରେ ସେହି ସମସ୍ତ ବନ୍ଧ୍ୟା ପୁତ୍ରଲାଭ

କରିବେ, ମହାଦେବ ପୂର୍ବକାଳେ ତନ୍ତ୍ରର ସମସ୍ତ ଉପାୟ କହି ଅଛନ୍ତି, ତାହା କମ୍ନେ କଥିତ ହେଲା ।

## ଜନ୍ମବନ୍ଧ୍ୟା ଚିକିତ୍ସା ।

ସମୂଲପତ୍ରାଂ ସର୍ପାକ୍ଷୀଂ ରବିବାରେ ସମୁଦ୍ଧରେତ୍ ।
ଏକବର୍ଣ୍ଣ ଗବାକ୍ଷୀରୈଃ କନ୍ୟାହସ୍ତେନ ପେଷୟେତ୍ ॥
ଋତୁକାଲେ ପିବେଦ୍ବନ୍ଧ୍ୟା ପଲାର୍ଦ୍ଧଂ ତଦ୍ଦିନେ ଦିନେ ।
କ୍ଷୀର ଶାଲ୍ୟନ୍ନମୁଦ୍ଗଞ୍ଚ ଲଘ୍ୱାହାରଂ ପ୍ରଦାପୟେତ୍ ॥
ଏବଂ ସପ୍ତଦିନଂ କୃତ୍ୱା ବନ୍ଧ୍ୟା ଭବତି ପୁତ୍ରିଣୀ ।
ଉଦ୍ବେଗଂ ଭୟଶୋକଞ୍ଚ ବ୍ୟାୟାମଞ୍ଚ ବିବର୍ଜ୍ଜୟେତ୍ ॥
ଅନଙ୍ଗଂ ଭୟଶୋକଞ୍ଚ ଦିବାନିଦ୍ରାଂ ବିବର୍ଜ୍ଜୟେତ୍ ।
ନ କର୍ମ୍ମ କାରୟେତ୍ କିଞ୍ଚିଦ୍ବର୍ଜ୍ଜୟେଚ୍ଛୀତମାତପମ୍ ॥
ନ ତସ୍ୟା ପରମାଂ ସେବାଂ କାରୟେତ୍ ପୂର୍ବବତ୍ କ୍ରିୟାମ୍ ।
ପତି ସଙ୍ଗାଦ୍ଭବେଦ୍ଗର୍ଭୋ ନାତ୍ର କାର୍ଯ୍ୟା ବିଚାରଣା ॥

ରବିବାରରେ ମୂଳ ଓ ପତ୍ର ସହ ଗୋଟିଏ ଶାଲିଞ୍ଚ ଗଛ ( ମଦରଙ୍ଗା ) ମୃତ୍ତିକାରୁ ଉଠାଇ ତାହା ଗୋଟିଏ ଅବିବାହିତା କନ୍ୟାଦ୍ୱାରା ଏକବର୍ଣ୍ଣା ଗାଭୀ ଦୁଗ୍ଧସହ ମର୍ଦ୍ଦନ କରିବ । ଋତୁର ପ୍ରଥମ ଦିନରୁ ଆରମ୍ଭ କରି ସାତଦିନ ପର୍ଯ୍ୟନ୍ତ ଏହି ଔଷଧ ପ୍ରତିଦିନ ପଲାର୍ଦ୍ଧ ପରିମାଣରେ ସେବନ କରିବ । ଏହି ସାତଦିନ ଦୁଗ୍ଧ ଶାଲି ଧାନ୍ୟର ଅନ୍ନ, ମୁଗ ପ୍ରଭୃତି ଲଘୁଦ୍ରବ୍ୟ ଭୋଜନ କରିବ । ଏହି ଏକ ସପ୍ତାହ ଉଦ୍ବେଗ, ଭୟ, ଶୋକ

ବ୍ୟାୟାମ, ପଞ୍ଚସହବାସ, ଦିବାନିଦ୍ରା, ଶ୍ରମଜନକ କାର୍ଯ୍ୟ, ଶୀତ ଓ ଅତପ ପରିତ୍ୟାଗ କରିବାକୁ ହେବ । ଏହି ନିୟମରେ ରହିଲେ ଗର୍ଭଧାରଣ ହୁଏ ସନ୍ଦେହ ନାହିଁ ।

ଏକମେବ ତୁ ରୁଦ୍ରାକ୍ଷଂ ସର୍ପାକ୍ଷୀବର୍ଯ୍ୟମାସକମ୍ ।
ପୂର୍ବବତ ଗବାଂ କ୍ଷୀରୈଃ ଋତୁକାଳେ ପ୍ରଦାପଯେତ୍ ॥
ମହାଗଣେଶ ମନ୍ତ୍ରେଣ ରକ୍ଷାଂ ତସ୍ୟାଶ୍ଚ କାରଯେତ୍ ॥
ମନ୍ତ୍ରସ୍ତୁ — ଓଁ ବଦନ୍ମହାଗଣପତେ ରକ୍ଷାମୃତଂ ମତ୍ସୁତଂ ଦେହି ।

ଗୋଟିଏ ରୁଦ୍ରାକ୍ଷ ଓ ଦୁଇତୋଲା ଶାଳଞ୍ଚ ନେଇ ଏକବର୍ଣ୍ଣା ଗାଭୀ ଦୁଗ୍ଧରେ ମର୍ଦ୍ଦନ ପୂର୍ବକ ଋତୁକାଳେ ସେବନ କଲେ ବନ୍ଧ୍ୟା ନାରୀର ଗର୍ଭଧାରଣ ହୁଏ । ଏହି କାର୍ଯ୍ୟ ଅନୁଷ୍ଠାନ ସମୟେ ମୂଳ ଲିଖିତ "ଓଁ ବଦନ୍" ଇତ୍ୟାଦି ଗଣେଶ ମନ୍ତ୍ରରେ ରକ୍ଷା କରିବ ।

ପତ୍ରମେକଂ ପଲାଶସ୍ୟ ଗର୍ଭିଣୀ-ପୟସାନ୍ୱିତମ୍ ।
ପୀତ୍ୱା ତୁ ଲଭତେ ପୁତ୍ରଂ ରୂପବନ୍ତଂ ନ ସଂଶୟଃ
ପଥ୍ୟମୁକ୍ତଂ ଯଥା ପୂର୍ବଂ ଭବେତ୍ ସପ୍ତ ଦିନାବଧି ॥

ଗର୍ଭବତୀ ନାରୀର ସ୍ତନ୍ୟ ଦୁଗ୍ଧ ସହିତ ଗୋଟିଏ ପଲାଶ ପତ୍ର ମର୍ଦ୍ଦନ ପୂର୍ବକ ସେବନ କଲେ ବନ୍ଧ୍ୟା-ନାରୀ ସୁରୂପ ପୁତ୍ରଲାଭ କରେ କିନ୍ତୁ ସାତଦିନ ପର୍ଯ୍ୟନ୍ତ ପୂର୍ବ କଥିତ ପଥ୍ୟାଦିର ନିୟମ ସକଳ ରକ୍ଷା-କରି ବିଧେୟ ।

ଦେବଦାଳ୍ୟାସ୍ତୁ ମୂଳନ୍ତୁ ଗ୍ରାହୟେତ୍ ପୁଷ୍ୟ ଭାସ୍କରେ ।
କୃଷ୍ଣଶ୍ଚ ପିବେତ୍ କ୍ଷୀରୈଃ ପୂର୍ବବଞ୍ଚ
କ୍ରମଯୋଗତଃ ।

ବନ୍ଧ୍ୟାପି ଲଭତେ ପୁତ୍ରଂ ଦେୟଂ ପଥ୍ୟଂ ଯଥାପ୍ରସ୍ତୁ ॥

ପୁଷ୍ୟା ସଂଯୁକ୍ତ ରବିବାରରେ ଦେବଦାରୀର ଚେର ଉଠାଇ ତାହାର ଛଅ ମାଷ ( ଏକମାଷ୧୦ ରତି ) ଦୁଗ୍ଧ ସହିତ ପେଷଣ ପୂର୍ବକ ସେବନ କଲେ ଜନ୍ମବନ୍ଧ୍ୟାର ପୁତ୍ର ପ୍ରାପ୍ତି ହୋଇଥାଏ, କିନ୍ତୁ ପୂର୍ବ କଥିତ ବିଧାନାନୁସାରେ ନିୟମାଦି ରକ୍ଷା କରିବାକୁ ହେବ ।

ତୁରଙ୍ଗ ଗନ୍ଧା ଘୃତବାରି ସିଦ୍ଧଂ
ଘାତ୍ୟଂ ପୟଃ ସ୍ନାନଦିନେ ଚ ପୀତ୍ୱା ।
ପ୍ରାପ୍ନୋତି ଗର୍ଭଂ ହ୍ୟଚିରଂ ତରନ୍ତୀ
ବନ୍ଧ୍ୟାପି ପୁତ୍ରଂ ପୁରୁଷ ପ୍ରସଙ୍ଗାତ୍ ॥
ଘୃତମ୍ଭୁ ଶୟନ ସମୟେ ପେୟମ୍ ।

ଋତୁସ୍ନାନ ଦିବସରେ ଘୃତ ଜଳ ସହିତ ଅଶ୍ୱଗନ୍ଧା ସିଦ୍ଧ କରତଃ ଘୃତ ଓ ଦୁଗ୍ଧ ସହ ତାହା ସେବନ କରି ପତି ସହବାସ କଲେ ପୁତ୍ରଲାଭ ହୁଏ ସନ୍ଦେହ ନାହିଁ । ପରନ୍ତୁ ଶୟନ ସମୟେ ଘୃତ ପାନ କରିବ ।

କୃଷ୍ଣାପରାଜିତାମୂଲଂ ବସ୍ତ କ୍ଷୀରେଣ ସଂ ପିବେତ୍ ।
ଋତୁସ୍ନାତା ସ୍ତ୍ରିୟା ଯାଜୁବନ୍ଧ୍ୟା ଗର୍ଭଧରା ଭବେତ୍ ।

ଋତୁ ସ୍ନାନାନ୍ତେ ଛାଗୀ ଦୁଗ୍ଧ ସହ କୃଷ୍ଣ ଅପରାଜିତାର ଚେର ମର୍ଦ୍ଦନ କରି ସେବନ କଲେ ବନ୍ଧ୍ୟା ଗର୍ଭବତୀ ହୁଏ ।

ସପିପ୍ପଲୀ କେଶର ଶୃଙ୍ଗ ବେରଂ
କ୍ଷୁଦ୍ରୋତ୍ପାଦଣଂ ଗବ୍ୟ ଘୃତେନ ପୀତମ୍ ।
ବନ୍ଧ୍ୟାପି ପୁତ୍ରଂ ଲଭତେ ହଟେନ
ଯୋଗୋତ୍ତମୋଽୟଂ ମୁନିଭିଃ ପ୍ରଦିଷ୍ଟଃ ॥

ପୀପ୍ପଳୀ, ନାଗକେଶର, ଅଦା ଏବଂ ଛେଞ୍ଚି ଗୋଲମରିଚ ଏ ସମସ୍ତ ଗାଈଘିଅରେ ପେଷଣ କରି ଭକ୍ଷଣ କଲେ ବନ୍ଧ୍ୟାର ପୁତ୍ର ହୁଏ । ଏହିଯୋଗ ମୁନିଗଣ କର୍ତ୍ତୃକ ନିର୍ଦ୍ଦିଷ୍ଟ ହୋଇଅଛି । ଏହା ଅତି ଉତ୍ତମ ଔଷଧ ।

---

## କାକବନ୍ଧ୍ୟା-ଚିକିତ୍ସା ।

ପୂର୍ବଂ ପୁତ୍ରବତୀ ଭୂତ୍ୱା ପଶ୍ଚାନ୍ନୋ ସୂୟତେ ଯଦି
କାକବନ୍ଧ୍ୟା ଚ ସାକ୍ଷେୟା ଚିକିତ୍ସା ସ୍ୟାଶ୍ଚ କଥ୍ୟତେ ॥

ଗୋଟିଏ ମାତ୍ର ପୁତ୍ର ଜନ୍ମ ହେବା ପରେ ପୁନର୍ବାର ଆଉ ଯାହାର ଗର୍ଭ ଧାରଣ ହୁଏନାହିଁ, ତାହାର ନାମ କାକବନ୍ଧ୍ୟା । ଅଧୁନା ତାଦୃଶୀ ନାରୀର ଚିକିତ୍ସା କଥିତ ହେଉଅଛି ।

ବାଷ୍ଟ୍ରାନ୍ତ୍ରାଂ ସମୂଳଂତୁ ପିଷ୍ଟ୍ୱା ଦୁଗ୍ଧେନ ମାହିଷେଃ ।
ମହିଷୀ ନବନୀତେନ ଋତୁକାଲେ ଚ ଭକ୍ଷୟେତ୍ ॥
ଏବଂ ସପ୍ତଦିନଂ କୁର୍ଯ୍ୟାତ୍ ପଥ୍ୟମୁକ୍ତଞ୍ଚ ପୂର୍ବବତ୍ ।
ଗର୍ଭଂସା ଲଭତେ ନାରୀ କାକବନ୍ଧ୍ୟା ସୁଶୋଭନଂ ॥

ମୂଳସହ ଗୋଟିଏ ଅପରାଜିତାର ବୃକ୍ଷ ଆଣି ମହିଷୀ ଦୁଗ୍ଧ ସହିତ ମର୍ଦ୍ଦନ ପୂର୍ବକ ଋତୁ କାଳରେ ମହିଷ ନବନୀତ ସହ ସେବନ କଲେ, କାକବନ୍ଧ୍ୟା ନାରୀ ପୁନର୍ବାର ଗର୍ଭବତୀ ହୁଏ । ଜନ୍ମବନ୍ଧ୍ୟାର ପ୍ରଥମ ଶ୍ଳୋକରେ ଯେପରି ପଥ୍ୟ ଓ ନିୟମାଦି କଥିତ ହୋଇଅଛି ଏ ସ୍ଥଳରେ ମଧ୍ୟ ତଦନୁରୂପ ଏକ ସପ୍ତାହ କରିବାକୁ ହେବ ।

ଅଶ୍ୱଗନ୍ଧୀଯ୍ୟ ମୂଳସ୍ତୁ ଗ୍ରାହ୍ୟଶ୍ଚେତ୍ ପୁଷ୍ୟଭାସ୍କରେ ।
ଘୋଟକସ୍ୟନ୍ତ୍ର ଦୁଗ୍ଧୀକ୍ଷୀରେଣ ପଲାର୍ଦ୍ଧଂ ଭକ୍ଷୟେତ୍ସଦା ।
ସାପ୍ତାହାଲ୍ଲଭତେ ଗର୍ଭଂ କାକବନ୍ଧ୍ୟା ନ ସଂଶୟଃ ॥

ପୁଷ୍ୟାନକ୍ଷତ୍ର ଯୁକ୍ତ ରବିବାରରେ ଅଶ୍ୱଗନ୍ଧାର ଚେର ଆଣି ମହିଷୀ ଦୁଗ୍ଧ ସହ ମର୍ଦ୍ଦନ ପୂର୍ବକ ଅର୍ଦ୍ଧ-ପଲ ପ୍ରମାଣ ସେବନ କରିବ । ସାତଦିନ ଏହିପରି ସେବନ କଲେ, କାକବନ୍ଧ୍ୟା ନାରୀ ଗର୍ଭବତୀ ହୁଏ ।

## ମୃତବତ୍ସା ଚିକିତ୍ସା ।

ଗର୍ଭ ସଂଜାତ ମାତ୍ରେଣ ପଞ୍ଚାଦ୍ୟାଚ ବତ୍ସରାତ୍ ।
ମ୍ରିୟତେ ଦ୍ୱିକି ବର୍ଷାଦ୍ୱା ଯସ୍ୟାଃ ସା ମୃତବତ୍ସିକା ॥

ଯେଉଁ ସ୍ତ୍ରୀର ଗର୍ଭ ସଂଜାତ ମାତ୍ରେ ଶିଶୁର ମୃତ୍ୟୁ ହୁଏ ଅଥବା ଏକମାସ, ଏକବର୍ଷ, ଦୁଇ ବା ତିନିବର୍ଷ ମଧ୍ୟରେ ମୃତହୁଏ, ଅତ୍ଏ ପ୍ରକାର ବାରମ୍ବାର ଘଟେ, ତାହାରନାମ ମୃତବତ୍ସା । ଅଧୁନା ତାଦୃଶୀ ନାରୀର ଚିକିତ୍ସା କଥିତ ହେଉଅଛି ।

ଯାବୀଜପୂରଦ୍ରୁମ ମୂଳମେକଂ
କ୍ଷୀରେଣ ପିଷ୍ଟ୍ୱା ହବିଷା ବିମିଶ୍ରଂ ।
ଋତୌ ନପୀତ୍ୱ ସ୍ୱପତିଂ ପ୍ରୟାତି
ଦୀର୍ଘାୟୁଷଂ ସା ତନୟଂ ପ୍ରସୂତେ ॥

ଡାଲିମ୍ବ ଚେର ଦୁଗ୍ଧ ସହିତ ପିଷ୍ଟକର ଉହିଁରେ ଘିଅ ମିଶାଇବ । ଅନନ୍ତର ଋତୁ କାଳରେ ଏହି ଔଷଧ ସେବନ ପୂର୍ବକ ଋତୁ ସ୍ନାନାନ୍ତେ ପତି ସହ-ବାସକଲେ ମୃତବତ୍ସା ନାରୀର ସନ୍ତାନ ଜନ୍ମି ଦୀର୍ଘ-

ଜାତା ହୁଏ , ସନ୍ଦେହ ନାହିଁ ।

## ଗର୍ଭରକ୍ଷା-ବିଧି ।

### ପ୍ରଥମ ମାସେ ।

ଅକସ୍ମାତ୍ ପ୍ରଥମେ ମାସେ ଗର୍ଭେ ଭବତି ବେଦନା,
ଗୋକ୍ଷୀରେଃ ପାଯୁଗ୍ମେ ତୁଲ୍ୟଂ ପଦ୍ମକେଶର ଚନ୍ଦନଂ ।
ପଲମାତ୍ରଂ ପିବେନାରୀ ଭ୍ରୁଣଂ ଗର୍ଭଂ ସ୍ଥିରୋଭବେତ୍ ॥

ବର୍ତ୍ତମାନ ଗର୍ଭରକ୍ଷା କଥିତ ହେଉଅଛି ।— ପ୍ରଥମ ମାସରେ ଗର୍ଭବେଦନା ଉପସ୍ଥିତ ହୋଇ ଗର୍ଭ ସ୍ରାବର ଆଶଙ୍କା ହେଲେ, ପଦ୍ମ କେଶର ଓ ଚନ୍ଦନ ତୁଲ୍ୟ ପରିମାଣ ଦୁଗ୍ଧସହ ମର୍ଦ୍ଦନ କରତଃ ଚାରିତୋଳା ପାନକଲେ ଗର୍ଭ ରକ୍ଷାହୁଏ ସନ୍ଦେହ ନାହିଁ ।

### ଦ୍ୱିତୀୟ ମାସେ ।

ନୀଲୋତ୍ପଲଂ ମୃଣାଳଞ୍ଚ ଯଷ୍ଟିଃ କର୍କଟ ଶୃଙ୍ଗିକା ।
ଗୋକ୍ଷୀରେଷ୍ଟୁ ଦ୍ୱିତୀୟେପି ପୀତ୍ୱା ଶାମ୍ୟତି ବେଦନା ॥

ନୀଳୋତ୍ପଳ, ଯଷ୍ଟିମଧୁ ଓ କର୍କଟଶୃଙ୍ଗୀ ଏ ସମସ୍ତ ଗୋ ଦୁଗ୍ଧରେ ମର୍ଦ୍ଦନ ପୂର୍ବକ ପାନକଲେ ଦ୍ୱିତୀୟ ମାସର ଗର୍ଭ ବେଦନା ପ୍ରଶାନ୍ତ ହୁଏ ।

### ତୃତୀୟ ମାସେ ।

ଶ୍ରୀଖଣ୍ଡଞ୍ଚ ବଚ୍ କୁଷ୍ଠଂ ମୃଣାଳଂ ପଦ୍ମ କେଶରମ୍ ।
ପୀତ୍ୱାଚ ଶୀତୋଦକଂ ପିଷ୍ଟଂ ତୃତୀୟେ ବେଦନାବତୀ ॥

ଚନ୍ଦନ କାଷ୍ଠଂ କୁଡ଼, ମୃଣାଳ ଏବଂ ପଦ୍ମ କେଶର

ଶୀତଳ ଜଳରେ ମର୍ଦ୍ଦନ ପୂର୍ବକ ସେବନ କଲେ ତୃତୀୟ ମାସର ବେଦନା ଉପଶମ ହୁଏ ।

ଚତୁର୍ଥ ମାସେ ।

ନୀଳୋତ୍ପଳଂ ମୃଣାଳାନି ଗୋକ୍ଷୁରଞ୍ଚ କଶେରୁକଂ ।
ଚତୁର୍ଥମାସେ ଗବ୍ୟକ୍ଷୀରେଣ ପିବେତ୍ସା ଶୂଳବେଦନା ॥

ନୀଳୋତ୍ପଳ, ମୃଣାଳ, ଗୋକ୍ଷୁର ଏବଂ କେଶୁର ଏ ସମସ୍ତ ଗୋଦୁଗ୍ଧରେ ମର୍ଦ୍ଦନ ପୂର୍ବକ ସେବନ କଲେ ଚତୁର୍ଥ ମାସର ଗର୍ଭ ବେଦନାର ଉପଶମ ହୁଏ ।

ପଞ୍ଚମ ମାସେ ।

ପୁନର୍ନବାଞ୍ଚ କାକୋଲୀଂ ତଗରଂ ନୀଲମୁତ୍ପଳଂ ।
ଗୋକ୍ଷୀରଂ ପଞ୍ଚମେମାସି ଗର୍ଭକ୍ଲେଶହରଂ ପିବେତ୍ ॥

ପୁନର୍ନବା, କାକୋଲୀ, ତଗରପୁଷ୍ପ, ନୀଳୋତ୍ପଳ ଏସମସ୍ତ, ଏକତ୍ର ମର୍ଦ୍ଦନ ପୂର୍ବକ ଗୋଦୁଗ୍ଧ ସହିତ ସେବନ କଲେ ପଞ୍ଚମ ମାସର ଗର୍ଭ ବେଦନା ପ୍ରଶାନ୍ତ ହୁଏ ।

ଷଷ୍ଠମାସେ ।

ସିତା କପିତ୍ଥମଜ୍ଜା ଚ ଶୀତତୋୟେନ ପେଷୟେତ୍ ।
ଷଷ୍ଠେମାସି ଗବାଂ କ୍ଷୀରେଣ ପିବେତ୍ କ୍ଲେଶ
ନିବୃତ୍ତୟେ ॥

ମଧୁ ଶର୍କରା ଓ କପିତ୍ଥର ଶଁସ, ଶୀତଳ ଜଳରେ ମର୍ଦ୍ଦନ ପୂର୍ବକ ଗୋ ଦୁଗ୍ଧ ସହିତ ସେବନ କଲେ ଷଷ୍ଠ ମାସର ବେଦନାର ପ୍ରଶାନ୍ତ ହୁଏ ।

ସପ୍ତମ ମାସେ ।

କଶେରୁଂ ପୌଷ୍କରଂ ମୂଳଂ ଶୃଙ୍ଗାଟ ନୀଲମୁତ୍ପଳଂ

ପିବେତ୍ ।     ନ୍ତମ ମାସିଃ କ୍ଷୀରୈଃ ପିତ୍ତା ପ୍ରଶମ୍ୟତି ॥

କେଶୁର, ପୁଷ୍କରମୂଳ, ପାଣିଫଳ, କାକୋଲି ଏସମସ୍ତ ବସ୍ତୁ ମର୍ଦ୍ଦନ ପୂର୍ବକ ଗୋଦୁଗ୍ଧ ସହିତ ସେବନ କଲେ, ସପ୍ତମ ମାସର ଗର୍ଭବେଦନା ପ୍ରଶାନ୍ତ ହୁଏ ।

ଅଷ୍ଟମ ମାସେ ।

ଯଷ୍ଟି ପଦ୍ମାଖ୍ୟକଂ ମୁସ୍ତଂ କଶେରୁଂ ଗଜପିପ୍ପଲୀଂ ।
କାକୋଲୀଂ ଗବାଂ କ୍ଷୀରୈଃ ପିବେଦଷ୍ଟମ ମାସକେ ॥

ଯଷ୍ଟିମଧୁ, ପଦ୍ମନାଡ, ମୁଥା, କେଶୂର, ଗଜପିପ୍ପଳୀ ଏବଂ କାକୋଲି ଏ ସମସ୍ତ ଦ୍ରବ୍ୟ ଏକତ୍ର ମର୍ଦ୍ଦନ ପୂର୍ବକ ଦୁଗ୍ଧ ସହିତ ସେବନ କଲେ ଅଷ୍ଟମ ମାସର ଗର୍ଭବେଦନା ଦୂରୀଭୂତ ହୁଏ ।

ନବମ ମାସେ ।

ଦ୍ରାକ୍ଷା ବୀଜ କଙ୍କୋଳଂ ମଧୁନା ସହ ଲେହୟେତ୍ ।
ବେଦନା ନବମେ ମାସି ଶାନ୍ତିମାପ୍ନୋତି ନାନ୍ୟଥା ॥

ଦ୍ରାକ୍ଷାମଞ୍ଜି ଓ କଙ୍କୋଲ ଏହି ଦୁଇଦ୍ରବ୍ୟ ଏକତ୍ର ମର୍ଦ୍ଦନ ପୂର୍ବକ ମଧୁ ସହିତ ସେବନ କଲେ ନବମ ମାସର ଗର୍ଭସ୍ରାବ ବେଦନା ଉପଶମ ହୁଏ ।

ଦଶମ ମାସେ ।

ଶର୍କରା ଗୋସ୍ତନୀକାଦୈଃ ସକ୍ଷୌଦ୍ରଂ କାଲମୁପ୍ପଲଂ ।
ପାୟୟେତ୍ ଦଶମେ ମାସି ଗବାଂ କ୍ଷୀରୈଃ ପ୍ରଶାନ୍ତୟେ ॥
ଅଥବା ଶୁଣ୍ଠୀ ସସିନ୍ଧଂ ଗୋକ୍ଷୀରୈର୍ଦ୍ଦଶମେ ପିବେତ୍ ।
ଅଥବା ମଧୁକଂ ଦାରୁ ଶୁଣ୍ଠୀଂ କ୍ଷୀରେଣ ସଂପିବେତ୍ ॥

ଶର୍କରା, ଦ୍ରାକ୍ଷାରସ, ମଧୁ ଏବଂ କାକୋଲି ଏ ସମସ୍ତ ଦ୍ରବ୍ୟ ମର୍ଦ୍ଦନ ପୂର୍ବକ ଗୋଦୁଗ୍ଧ ସହିତ ସେବନ କଲେ

ଦଶମ ମାସର ଗର୍ଭ ବେଦନା ଉପଶମ ହୁଏ । କ୍ଷମ୍ଭା ଶୁଣ୍ଠୀ ଗୋଦୁଗ୍ଧ ସହ ପାକ କରତଃ ସେବନ କଲେ ବେଦନାର ଉପଶମ ହୁଏ, ଅଥବା ଯଷ୍ଟିମଧୁ ଦେବଦାରୁ ଓ ଶୁଣ୍ଠୀ ଦୁଗ୍ଧରେ ପାକ କରତଃ ସେହି ଦୁଗ୍ଧ ସେବନ କଲେ ଦଶମ ମାସର ଗର୍ଭ ବେଦନା ଦୂରୀଭୂତ ହୁଏ ।

---

## ଚଳିତ ଗର୍ଭ ଚିକିତ୍ସା ।

ଧାନ୍ୟାଞ୍ଜନଂ ସାବର ଯଷ୍ଟିକାଖ୍ୟଂ
ଛ୍ରୟବଂ ନପୀତଂ ପ୍ରମଦା ହଠେନ ।
ସପ୍ତାହ ମାସଂ ହ୍ୱନଯୋଜ୍ୟ ନାସ୍ତି
ସ୍ତୁଭିତ ଗର୍ଭ ଚଳତ ନ ଚାସଂ ।

ଧନିଆଁ ରସାଞ୍ଜନ, ଲୋଧ୍ର, ଯଷ୍ଟିମଧୁ ଏହି କେତେକ ଦ୍ରବ୍ୟ ମର୍ଦ୍ଦନ ପୂର୍ବକ କ୍ୱାଥ ବାହାର କରି ତିନଦିନ କ୍ଷମ୍ଭା ଏକ ସପ୍ତାହ ସେବନ କଲେ ଚଳିତ ଗର୍ଭ ସ୍ଥିରହୁଏ ।

କୁଲାଲହସ୍ତୋଦ୍ଭବ କର୍ଦ୍ଦମସ୍ୟ
ବନ୍ତ୍ରୀପଯୂଃ କ୍ଷୌଦ୍ରଯୁତସ୍ୟ ମାସଂ ।
ଗର୍ଭବ୍ୟଥାଂ ଶୂଲନସ୍ତ୍ରୀଂ କର୍ଣାଯ୍ୟ
ହରେତ୍ତି ଗର୍ଭଂ ପ୍ରକୁତଂ ହଠେନ ॥

କୁମ୍ଭକାର ଯେତେବେଳେ ଦ୍ରବ୍ୟ ପ୍ରସ୍ତୁତ କରେ, ସେତେବେଳେ ତାହାର ହସ୍ତସ୍ଥ ମାଟି, ଛାଗୀଦୁଗ୍ଧ ଓ କିଞ୍ଚିତ୍ ମଧୁ ଏକତ୍ର ମିଶାଇ ସେବନ କଲେ, ଦଶମ ଗର୍ଭବେଦନା ଉପଶମ ହୁଏ; ସନ୍ଦେହ ନାହିଁ ।

କଣ୍ଟେରୁ ଶୃଙ୍ଗାଟକ ଖରକାଣି
ପଯ୍ୟୋଧନୌରସ୍ତ ଶତାବରୀଭିଃ ।
ସିଦ୍ଧଂ ପୟଃ ଶର୍କରୟା ଵିମିଶ୍ରଂ
ସଂସ୍ଥାପୟେତ୍ ଦ୍ରୁତ ମୁଦ୍ଧାଚ୍ଛ୍ୟ ଶୂଳଂ ।।

ଚେଙ୍କଶୂର, ପାଣିଫଳ, ଖଟ୍ସ, ମୁଥା, ଏରଣ୍ଡ ଓ ଶତାବରୀ ଏହି ସକଳ ଦ୍ରବ୍ୟ ଦୁଗ୍ଧସହ ପାକକର ଶର୍କରା ମିଶ୍ରିତ କରତଃ ସେବନ କଲେ, ଚଳିତ ଗଭ ସ୍ଥିରହୁଏ ।

କୁବଲୟ୍ୟକନ୍ଦଂ ସତିଲଂ ପୀତ୍ୱା କ୍ଷୀରେଣ
ମଧୁନା ବନିତା ।
ମୁକ୍ତି ର୍ଗୁରୁତର ଦୋଷେ ଚଳିତଂ ଗର୍ଭଂ
ସଂସ୍ଥାପୟେଦାଶୁ ।।

ପଦ୍ମରକନ୍ଦ, କୃଷ୍ଣତିଳ ଏହି ମର୍ଦ୍ଦନ ପୂର୍ବକ ଚର୍ବ୍ବଁରେ ମଧୁ ମିଶାଇ ଦୁଗ୍ଧ ସହିତ ସେବନ କଲେ ଚଳିତ ଗର୍ଭ ସ୍ଥିରହୁଏ ।

---

## ସୁଖ ପ୍ରସବ ଚିକିତ୍ସା ।

ଉତ୍ତରାଭିମୁଖଂ ଗ୍ରାହ୍ୟଂ ଶ୍ୱେତ ଗୁଞ୍ଜାସ୍ୟ ମୂଳକଂ ।
କଟ୍ୟାଂ ବଦ୍ଧା ବମୁକ୍ତ୍ୟଞ୍ଚ ଗର୍ଭିଂ ପ୍ରସୂତେ ତତ୍କ୍ଷଣାତ୍ ।।

ଗର୍ଭିଣୀ ନାରୀ ଉତ୍ତର ମୁଖ ହୋଇ ଶ୍ୱେତ ଗୁଞ୍ଜର ଉତ୍ତର ବଗର ଚେର ଅଣି କଟି ଦେଶରେ ବାନ୍ଧିଲେ ଅଶୁ ପ୍ରସବ ହୁଏ ।

ବାସକସ୍ୟ ତୁ ମୂଳନ୍ତୁ ଚୈତ୍ରରକ୍ଷଂ ସମୁଦ୍ଧରେତ୍ ।
କଟ୍ୟାଂ ବଦ୍ଧା ସପ୍ତ ସୂତ୍ରୈଃ ସୁଖଂ ନାରୀ ପ୍ରସୂୟେତ ।।

ବାସକ ଗଛର ଉତ୍ତର ଦିଗସ୍ଥ ଚେର ଅଣି ସାତଖି ସୂତାଦ୍ୱାରା ଗର୍ଭିଣୀ ନାରୀର କଟି ଦେଶରେ ବାନ୍ଧିଲେ ସୁଖରେ ପ୍ରସବ ହୁଏ ।

ଉତ୍ତରେ ଚ ସମାଲୋଡ୍ୟ ଶ୍ୱେତ ଗୁଞ୍ଜା ଫଲୀମୂଲକଂ ।
ସୁଖ ପ୍ରସବ ମାପ୍ନୋତି ତଦ୍ଭକ୍ଷଣାନ୍ନାତ୍ର ସଂଶୟଃ ॥
ସଦ୍ୟ ଦେବଦାଲ୍ୟାସ୍ତୁ ମୂଲନ୍ତୁ କଟିସ୍ଥଂ ପ୍ରସବେତ୍ ସୁଖଂ ॥

ଶ୍ୱେତଗୁଞ୍ଜ ଗଛର ଉତ୍ତର ଦିଗସ୍ଥ ଫଳ ଗର୍ଭିଣୀ ନାରୀର କେଶରେ ବାନ୍ଧିଲେ ସୁଖରେ ପ୍ରସବ ହୁଏ । ଅପାମାରଙ୍ଗ ଗଛର ମୂଳ କଟି ଦେଶରେ ବାନ୍ଧିଲେ ମଧ୍ୟ ସୁଖରେ ପ୍ରସବ ହୁଏ ।

କୋପ୍ୟେନ ଲାଙ୍ଗଲୀ ମୂଲଂ * * *
ନାଭୀନ୍ଧି ଲେପୟେତ୍ତେନକ୍ଷଣାତ୍ ପ୍ରସୂୟତେ ସୁଖଂ ॥

ଲାଙ୍ଗଲୀ ମୂଳ ଜଳରେ ମର୍ଦ୍ଦନ ପୂର୍ବକ ନାଭୀରେ ପ୍ରଲେପ ଦେଲେ ଅଶୁ ସୁଖରେ ପ୍ରସବ ହୁଏ ।

ସମାତୁଲୁଙ୍ଗ ମଟୂକସ୍ୟ ଚୂର୍ଣ୍ଣ
ମଧ୍ୱାଜ୍ୟ ମିଶ୍ରଂ ପ୍ରମଦା ନପୀୟ ।
ବ୍ୟଥାବିହୀନଂ ପ୍ରସବଂ କରୋତି
ପ୍ରାପ୍ନୋତି ନୈବାତ୍ର ବିକଳ୍ପ ବୁଦ୍ଧିଃ ॥
ଅଥ ମାତୁଲୁଙ୍ଗସ୍ୟ ମୂଲଂ ଯୋଜ୍ୟଂ
କରୁ ଫଲଂ କ୍ୱାଥଯେଦ୍ୱା ପେୟଂ ।

ଲେମ୍ବୁର ଚେର ଓ ଯଷ୍ଟିମଧୁ ଏକତ୍ର ଚୂର୍ଣ୍ଣ କରତଃ ଘୃତ ଓ ମଧୁ ମିଶାଇ ସେବନ କଲେ ଗର୍ଭିଣୀ ନାରୀ ସୁଖରେ ପ୍ରସବ କରେ । ମାତୁଲଙ୍ଗ ମୂଳର କ୍ୱାଥ, ଘୃତ ଓ ମଧୁ ସହ ପାନ କଲେ ଏହି ଫଳ ହୁଏ ।

ଦଶମୂଲୀ ଘୃତଂ ତୋୟଂ ଘୃତ ସୈନ୍ଧବ ସଂଯୁତଂ ।
ଶୂଲାତୁରା ପିବେଦାଶୁ ସୁଖଂ ନାରୀ ପ୍ରସୂୟତେ ॥

ଦଶମୂଲୀ ପାଚନ, ଘୃତ ଓ ସୈନ୍ଧବ ଏକତ୍ର ମିଶାଇ ପାନ କଲେ ଗର୍ଭିଣୀ ଅଶୂ ସୁଖରେ ପ୍ରସବ କରେ ।

---

## ସୂତିକା ରୋଗ ଚିକିତ୍ସା ।

ସୂତିକାରୋଗ ଶାନ୍ତ୍ୟର୍ଥଂ କୁର୍ଯ୍ୟାଦ୍ୱାତହରଂ କ୍ରିୟାମ୍ ।
ଦଶମୂଲକୃତଂ କ୍ୱାଥଂ କୋଷ୍ଣଂ ଦଦ୍ୟାଦ୍‌ଘୃତାନ୍ୱିତମ୍ ॥

ସୂତିକା ରୋଗର ପ୍ରଶମନାର୍ଥ ବାୟୁ ନାଶକ ଚିକିତ୍ସା କରିବ । ଦଶମୂଳର ଈଷଦୁଷ୍ଣ କ୍ୱାଥରେ ଘୃତ ପ୍ରକ୍ଷେପ ଦେଇ ପାନ କରିବାକୁ ଦେବ ।

ଅମୃତା ନାଗର ସହଚର ଭଦ୍ରୋତ୍କଟ ପଞ୍ଚ
ମୂଲକଂ ଜଲଦମ୍ ।
ଶୃତ ଶୀତଂ ମଧୁଯୁକ୍ତଂ ଶମୟତି ଦୋଷେଣ
ସୂତିକାନ୍ତକମ୍ ॥

ଗୁଳୁଚି, ଶୁଣ୍ଠି, କାଞ୍ଚଙ୍ଗି, ବେଣାମୂଳ, ବୃହତ୍ ପଞ୍ଚମୂଳୀ (ବେଲ, ପାଟେଲି, ଅଗବଥୁ, ଫେଣଫେଣା, ଗମ୍ଭାରି) ଓ ମୁଥା ଏ ସମସ୍ତର କ୍ୱାଥ ମଧୁ ମିଶ୍ରିତ କରି ପାନକଲେ ସୂତିକାରୋଗ ଶୀଘ୍ର ପ୍ରଶମିତ ହୁଏ ।

ଦେବଦାର୍ବ୍ୟାଦି କ୍ୱାଥ ।

ଦେବଦାରୁ ବଚା କୁଷ୍ଠଂ ପିପ୍ପଲୀ ବିଶ୍ୱଭେଷଜମ୍ ।
ଭୂନିମ୍ବଃ କଟ୍‌ଫଲଂ ମୁସ୍ତ ତିକ୍ତା ଧାନ୍ୟାହରୀତକୀ ॥

ଗଜକୃଷ୍ଣା ସଡୂ୍ୟାଃ ଶ୍ରୁଙ୍ଗୀ ଗୋକ୍ଷୁରୁର୍ଧନ୍ୱଯାସକଃ ।
ବୃହତ୍ୟତିବିଷା ଛିନ୍ନା କର୍କଟଃ, କୃଷ୍ଣଜୀରକଃ ॥
ସମଭାଗାନ୍ୱିତୈ ରେତୈ ସିନ୍ଧୁଗ୍ରମଠ ସଂଯୁତମ୍ ।
କ୍ୱାଥ ମଷ୍ଟାବଶେଷଂ ତୁ ପ୍ରସୂତାଂ ପାୟୟେତ୍ ସ୍ତ୍ରିୟମ୍ ।
ନାଶୟେତ୍ ସୂତିକାରୋଗଂ ବାତପିତ୍ତ କଫୋଦ୍ଭବମ୍ ।
କଷାୟୋ ଦେବଦାର୍ବ୍ବାଦ୍ୟଃ ସୂତାୟାଃ ପରମୌଷଧମ୍ ॥

ଦେବଦାରୁ, ବଚ, କୁଡ଼, ପିପ୍ପଳୀ, ସୁଣ୍ଠି, ଚିରେଇତା, କାଫଳ, ମୁଥା, ପିତ୍‌କଣ୍ଟକୀ, ଧନିଆଁ, ହରିଡ଼ା, ଗଜପିପ୍ପଳୀ, ଅଙ୍କୁରନ୍ତ, ଗୋକ୍ଷୁର, ଦୁର୍ଲ୍ଲଭା, ବୃହତୀ, ଅତିଵିଷା, ଗୁଳୁଚ, କର୍କଟାଶୃଙ୍ଗୀ କୃଷ୍ଣଜୀର ଏ ସମସ୍ତ ଦ୍ରବ୍ୟ ସମଭାଗ ନେଇ ପାଣିରେ ସିଦ୍ଧକରି ଅଷ୍ଟମାଂଶ ପାଣି ଥିବାବେଳେ ଉଛାଇବ । ଏହି କ୍ୱାଥରେ ସୈନ୍ଧବ ଓ ହିଙ୍ଗୁ ପ୍ରକ୍ଷେପ ଦେଇ ପ୍ରସୂତାକୁ ପାନ କରିବାକୁ ଦେବ । ଏହାଦ୍ୱାରା ଶୂଳ, କାଶ, ଜ୍ୱର, ମୁର୍ଚ୍ଛା, କମ୍ପ, ଶିରପୀଡା, ପ୍ରଳାପ, ତୃଷା, ଦାହ, ତନ୍ଦ୍ରା, ଅତିସାର ଓ ବାନ୍ତି ଉପଶମ ହୁଏ । ଏହି ଦେବଦାର୍ବ୍ବାଦି କଷାୟ ବାତଜ, ପିତ୍ତଜ ଓ କଫଜ ପ୍ରସୂତାର ପରମ ଔଷଧ ।

---

## ବାଳରୋଗ ।

ଏକମାସ ବୟସ୍କ ବାଳକକୁ ଏକରତି ପରିମାଣ ଔଷଧ ପ୍ରୟୋଗ କରିବ ଉଚିତ । ଉକ୍ତ ଔଷଧ ମଧୁ, ଚିନି ବା ଘୃତ ସହିତ ଅବଲେହ ରୂପେ ପ୍ରୟୋଗ

କରିବ । ଏ ..ର ଔଷଧ ମାସେ ମାସେ ଏକରତି କରି ବୃଦ୍ଧି କରିବ ଏବଂ ବର୍ଷାନ୍ତେ ଦୁଇ ଅଣାକରି ଷୋଳବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରିବ ।

ମରିଚ, ପିପଳୀ, ଶୁଣ୍ଠି, ହରିଡା, ବଚ ଓ ହରିଦ୍ରା ଏହି ଦ୍ରବ୍ୟ ଗୁଡ଼ିକର ଚୂର୍ଣ୍ଣ ସମଭାଗ ଗ୍ରହଣ ପୂର୍ବକ ଏକତ୍ର ମିଶ୍ରିତ କରିବ । ଉକ୍ତ ଚୂର୍ଣ୍ଣ ସ୍ତନ୍ୟଦୁଗ୍ଧ ସହିତ ପାନ କରାଇଲେ କଣ୍ଠସ୍ଥ ଶ୍ଳେଷ୍ମା ଉପଶମ ହୁଏ ।

ମୃତ୍ତିକା ପିଣ୍ଡ ଉତ୍ତପ୍ତ କରି ଦୁଗ୍ଧରେ ନିକ୍ଷେପ ପୂର୍ବକ ଏହିପିଣ୍ଡ ଉଷ୍ଣ ଥାଉଁ ଥାଉଁ ଶିଶୁର ନାଭି ପ୍ରଦେଶରେ ସ୍ଥାପନ କଲେ ନାଭିସ୍ଥ ଶୋଥର ଶାନ୍ତିହୁଏ ।

ହରିଦ୍ରା, ଲୋଧ, ପ୍ରିୟଙ୍ଗୁ ଓ ଯଷ୍ଟିମଧୁ ଏହିଦ୍ରବ୍ୟ ଗୁଡ଼ିକ ସହଯୋଗରେ ତୈଳପାକ କରିବ । ଉକ୍ତ ତୈଳ ନାଭି ପ୍ରଦେଶରେ ମାଲିଶ କଲେ ନାଭିପାକ ପ୍ରଶମିତ ହୁଏ ।

ମୁଥା, ପିପଳୀ, ଅତିଚ୍ଛା, କାକଡ଼ାଶୃଙ୍ଗୀ ଏହିଦ୍ରବ୍ୟ ଗୁଡ଼ିକ ସମଭାଗନେଇ ଚୂର୍ଣ୍ଣକରି ଏକତ୍ର ମିଶ୍ରିତ କରିବ । ଉକ୍ତ ଚୂର୍ଣ୍ଣ ଉପଯୁକ୍ତ ମାତ୍ରାରେ ମଧୁ ସହିତ ଶିଶୁକୁ ସେବନ କରାଇବ । ଏଥିରେ ଜ୍ୱର, ଅତିସାର, କାଶ, ଶ୍ୱାସ ଓ ବାନ୍ତି ପ୍ରଶମିତ ହୁଏ ।

ଧାତକୀଫୁଲ, ବେଲସୁଣ୍ଠା, ଧନିଆଁ, ଲୋଧ, ଇନ୍ଦ୍ରଯବ ଓ ବାଳା ଏହିଦ୍ରବ୍ୟ ଗୁଡ଼ିକ ସମଭାଗନେଇ ଚୂର୍ଣ୍ଣକରି ଏକତ୍ର ମିଶ୍ରିତ କରିବ । ଉପଯୁକ୍ତ ମାତ୍ରା ମଧୁ ସହିତ ସେବନ କରାଇଲେ ବାଳକର ଜ୍ୱର ଅତି-

ସାର ଓ ବାନ୍ତି ରୋଗ ନିବାରିତ ହୁଏ ।

ହରିଦ୍ରା, ଦେବଦାରୁ, ସରଳକାଷ୍ଠ, ଗଜପିପଳି, ବୃହତୀ, ଅଙ୍କଗନ୍ଧ, କୃଷ୍ଣପର୍ଣ୍ଣୀ ଓ ସଉପ ଏ ସମସ୍ତ ସମ-ପରିମାଣ ଚୂର୍ଣ୍ଣକରି ଏକତ୍ର ମିଶାଇବ । ଉପଯୁକ୍ତ ମାତ୍ରା ମଧୁ ଓ ଘୃତ ସହିତ ସେବନ କରାଇଲେ ଗ୍ରହଣୀ, ବାତଶୂଳ, କାମଳା, ଜ୍ୱର, ଅତିସାର, ପାଣ୍ଡୁ ଓ ଶୋଥ ପ୍ରଶମିତ ହୁଏ ।

ଯେଉଁ ଶିଶୁ ସ୍ତନ୍ୟ ପାନ କରୁଁ୨ ବାନ୍ତିକରେ ତାହାକୁ ବୃହତୀ ଓ ଅଙ୍କଗନ୍ଧ ଫଳର ହାର ଘୃତ ଓ ମଧୁ ସହିତ କିମ୍ବା ପଞ୍ଚକୋଲ ଚୂର୍ଣ୍ଣ ଘୃତ ମଧୁ ସହିତ ପାନ କରାଇବ ।

ପିପଳି, ମରିଚ ଚୂର୍ଣ୍ଣ ମଧୁ, ଚିନି ଲେମ୍ବୁରସ ସହିତ ଶିଶୁକୁ ପାନ କରାଇବ । ଏହାଦ୍ୱାରା ହିକ୍କା ଓ ବମନ ରୋଗ ବିନଷ୍ଟ ହୁଏ ।

ବେଲସୁଣ୍ଠା, ଧାତକୀଫୁଲ, ନୀଳଝିଣ୍ଟି, ଲୋଧ ଓ ଗଜପିପଳୀ ଏହାର କ୍ୱାଥ ବା ଚୂର୍ଣ୍ଣ ମଧୁ ସହିତ ଶିଶୁକୁ ସେବନ କରାଇବ । ଏହାଦ୍ୱାରା ଅତିସାର ରୋଗର ଶାନ୍ତିହୁଏ ।

ସୁଣ୍ଠି, ଉଭୁପି, ନୀଳଝିଣ୍ଟି ପତ୍ର ଓ ଇନ୍ଦ୍ରଯବର କ୍ୱାଥ ଶିଶୁକୁ ପ୍ରାତଃକାଳରେ ପାନ କରାଇଲେ ସର୍ବ ପ୍ରକାର ଅତିସାର ନିବାରିତ ହୁଏ ।

ବେଲସୁଣ୍ଠା, ଅମୃତାଳର କ୍ୱାଥରେ ଖଇ ଓ ଚିନି ମିଶ୍ରିତ କରି ଶିଶୁକୁ ପାନ କରାଇଲେ ବାନ୍ତି, ଅତି-

ଯାଇ ଆରୋଗ୍ୟ ହୁଏ ।

ବଟଚୂଳ ଚାଉଳଧୂଆ ପାଣିରେ ପେଷଣ କରି ବାଳକକୁ ପାନ କରାଇଲେ ଅତିସାର ଓ ଗ୍ରହଣୀ ଉପଶମ ହୁଏ ।

କଳାଜୀରା, ଚୂଣା ଏକତ୍ର ସମଭାଗ ନେଇ ଚୂର୍ଣ୍ଣକରି ବେଲପତ୍ର ରସରେ ମିଶାଇବ ଏହା ସେବନ କରାଇଲେ ଶିଶୁର ଆମରକ୍ତ ଶୂଳ ବିନଷ୍ଟ ହୁଏ ।

ଛାମୁଛାଲ ରସ ଛେଳି ଦୁଗ୍ଧରେ ପିଆଇଲେ ଗ୍ରହଣୀ ରୋଗ ନିବାରିତ ହୁଏ ।

ପିପଳି, ମରିଚ, ଶୁଣ୍ଠି ଅଳାଇଚ ସମାନ ଭାଗରେ ନେଇ ଚୂର୍ଣ୍ଣକରି ଚିନି, ମଧୁ ଓ ସୈନ୍ଧବଲବଣ ସହିତ ମିଶ୍ରିତ କରି ସେବନ କଲେ ବାଳକ ମାନଙ୍କର ମୂତ୍ରରୋଗ ଆରୋଗ୍ୟ ହୁଏ ।

ଦ୍ରାକ୍ଷା, ହରିଡା, ଓ ପିପଳି ଚୂର୍ଣ୍ଣ ଘୃତ ଓ ମଧୁ ସହିତ ସେବନ କଲେ ଶ୍ୱାସ, କାଶ ନିବାରିତ ହୁଏ ।

କୁଡ଼, ଉଶୁରି, କକଡ଼ାଶୃଙ୍ଗୀ, ପିପଳି, ଦୁର୍ଲ୍ଲଭା ଚୂର୍ଣ୍ଣ ମଧୁ ସହିତ ଲେହନ କଲେ ପାଞ୍ଚ ପ୍ରକାର କାଶ ନିବାରିତ ହୁଏ ।

ତାଳମୂଳମଞ୍ଜି, ଜୀରା, ନାଗେଶ୍ୱର ଚୂର୍ଣ୍ଣ ଚିନି ଓ ମଧୁ ସହିତ ମିଶାଇ ଲେହନ କଲେ ତୃଷା ନିବାରିତ ହୁଏ ।

ହୋଙ୍ଗଣା ଖଇ ଓ ହଳଦୀ ଘିଅରେ ଶୋଧନକରି ଚଟାଇଲେ ଦାଢ଼ା ପରିଷ୍କାର ହୁଏ । ପିତୁଡ଼ା ହୁଏନାହିଁ ।

ବର୍ଷକର ବାଛୁରି କାନର ରକ୍ତ ଟୋପାଏ ଚଟାଇଲେ ପିତୁଡ଼ା ଭଲ ହୁଏ ।

ଉମ୍ବା ପତ୍ରରେ ପୁରୁଣାଘିଅ ପାକକରି ଫେଣ ମରି-ଗଲେ, ଘିଅର ଦ୍ୱିଗୁଣ ଅଦାରସ ଦେଇ, ପୁନର୍ବାର ପାକ କରିବ, ଘିଅ ମାତ୍ର ଅବଶେଷ ଥିଲେ ଓହ୍ଲାଇ ସେହି ଘିଅ, କଣ୍ଠ ଓ ଛାତିରେ ମାଲିସ କଲେ, ସର୍ଦ୍ଦି କଫ କାଶ ଭଲ ହେବ ।

ଇନ୍ଦ୍ର ମାରିଷ ପତ୍ର ରସ ୧ ଧନ୍ଦିଷ୍ଠାଙ୍କ (ଧାତୁ ଅନୁ-ଯାରେ) ପର୍ଯ୍ୟନ୍ତ ସେବନ କରାଇଲେ ଝାଡ଼ା ବା ବାନ୍ତି ହୋଇ କଫ ବାହାରିଯିବ ।

ନାଗରମୁଥା, ହରଡ଼ା, ଧନ୍ୟା, ପଟୋଳପତ୍ର ଓ ଯଷ୍ଟିମଧୁ ଏମାନଙ୍କ କ୍ୱାଥ ଅଳ୍ପ ଉଷ୍ଣ ଥାଉ ଥାଉ ପାନ କରାଇଲେ ଜ୍ୱର ଭଲହୁଏ ।

ଅଙ୍କ, ହଳଦ, କୁଡ଼ୁ, ରାଇ ସୋରିଷ ଓ ଇନ୍ଦ୍ରଜବ ଘୋଳ ଦହିରେ ବାଟି ଲେପଦେଲେ କାଛୁ କୁଣ୍ଡିଆ ଭଲହୁଏ ।

ନଡ଼ିଆ ତେଲ ଓ କର୍ପୂର ଏକତ୍ର ମିଶାଇ ଲଗା-ଇଲେ ଖସୁ କୁଣ୍ଡିଆ ଭଲହୁଏ ।

କୁମ୍ଭୀର ଦାନ୍ତ ଘୋରି ପିଆଇଲେ କିମ୍ବା ବାଇ-ଅଁଳା ପତ୍ର ଓ ମୁଷାକାନି ପତ୍ର ପତର ପୋଡ଼ାକରି ରସ ବାହାର କରିବ, ସେହି ରସରେ ପାଗଡ଼ା ଖଇର ଘୋରି ଖୁଆଇଲେ ବାନ୍ତିର ଝାଡ଼ା ଭଲହୁଏ ।

ସମାପ୍ତ ।

# ବିଜ୍ଞାପନ ।

ସମ୍ବଲପୁର ହିତୈଷିଣୀ ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ଦୀନବନ୍ଧୁ ଗର୍ଣ୍ଣାୟକଙ୍କ ରଚିତ ପୁସ୍ତକ ସବୁ ନିମ୍ନଲିଖିତ ଠିକଣାରେ ମିଳେ ।

| | |
|---|---|
| ନାରୀଶିକ୍ଷା (ନାରୀ-ଜୀବନ ଗଠନ) | ।୦ । |
| ପରିଶ୍ରମ (ସ୍ୱାସ୍ଥ୍ୟ ଉନ୍ନତିର ଅମୂଲ୍ୟ ମନ୍ତ୍ର) | ।୦ / |
| ଧର୍ମ-କର୍ମ (ଜାତୀୟ ଉଦ୍‌ବୋଧନ) | ।୦ / |
| ଜୀବନ ତରଙ୍ଗ (ନୈତିକ ଜୀବନ) | ।୦ / |
| ଶୋଭା ସୁନ୍ଦରୀ (ପ୍ରକୃତିର ବଡ଼ସ ଚିତ୍ର) | ।୦ / |
| ସିନ୍ଧୁ ମନ୍ଥନ (ପୌରାଣିକ କାବ୍ୟ) | ।୦ / |
| ଧର୍ମ-ଯୁଧିଷ୍ଠିର ସଂବାଦ (ଧର୍ମ ଜ୍ଞାନ ଓ କର୍ତ୍ତବ୍ୟ ସମ୍ବନ୍ଧେ ପ୍ରଶ୍ନୋତ୍ତର) | ।୦ ୯ ୫ |
| ବନ୍ଧ୍ୟା-ଚିକିତ୍ସା | ।୦ ୬ |

## ଅବକାଶ ମଞ୍ଜରୀ ।

ଶ୍ରୀମତୀ ସୁଲୋଚନା ଦେବୀଙ୍କ ବିରଚିତ । ପରମ ଭକ୍ତିଭାଜନ ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ (ଦୀପିକାର ସମ୍ପାଦକ), ନୀଳମଣି ବିଦ୍ୟାରତ୍ନ, ଗଙ୍ଗାଧର ମେହେର, ଚିନ୍ତାମଣି ମହାନ୍ତି, ଶଶିଭୂଷଣ ରାୟ ପ୍ରଭୃତି ସାହିତ୍ୟରଥୀ ମହୋଦୟମାନଙ୍କ ଦ୍ୱାରା ବିଶେଷ ଭାବେ ପ୍ରଶଂସିତ । ବାଳିକା ମାନଙ୍କ ମନୋ-ରଞ୍ଜନ ସ୍ଥଳରେ ନୀତିଶିକ୍ଷା ପ୍ରଦାନର ଅଭିନବ ଗଦ୍ୟ ପଦ୍ୟ ପୁସ୍ତିକା । ୮୪ ପୃଷ୍ଠା ମୂଲ୍ୟ ଚାରିଅଣା ମାତ୍ର ।

ଶ୍ରୀଆର୍ତ୍ତତ୍ରାଣ ମିଶ୍ର ସେକ୍ରେଟେରୀ
ବାମଣ୍ଡା ବୁକ୍ ପ୍ରିଣ୍ଟିଂ କୋଃ ଲିମିଟେଡ
ଦେବଗଡ଼, ବାମଣ୍ଡା ।